# କାଗଜରୁ ଆକୃତି



ସୃଜନିକା

# ବ୍ୟବହାର ପାଇଁ ସୂଚନା....

କାଗଜ ଭଙ୍ଗାର ମଜା ବହିଟି ସବୁ ବୟସର ଲୋକଙ୍କର କାମରେ ଆସି ପାରିବା ଭଳି ଏକ ସାଧନ ସାମଗ୍ରୀ।

- ପିଲାମାନେ ଏଥିରୁ ସିଧାସଳଖ ମଜା ପାଇପାରିବେ।
- ଶିକ୍ଷକ/ଶିକ୍ଷୟିତ୍ରୀମାନେ ଏହାକୁ ପିଲାମାନଙ୍କ ସହ କାମ କରିବାର ଏକ ମାଧ୍ୟମ ଭାବରେ ବ୍ୟବହାର କରିପାରିବେ।
- ବାପା ମା' ବା ବଡ ଭାଇଭଉଣୀମାନେ ପିଲାମାନଙ୍କ ସହିତ ମିଶି କରି କାଗଜ ଭଙ୍ଗା ଭଳି କିଛି କାମ କରିଲେ ପରିବାର ଭିତରେ ସମ୍ପର୍କ ନିବିଡ ହୋଇପାରିବ।
- ଶିକ୍ଷା ଓ ବିଜ୍ଞାନ କର୍ମୀମାନେ ଅଜଣା ଜାଗାରେ ପରିଚିତି ଆଣିବା ପାଇଁ ଏଥିରୁ ନିଜର କାମ ଆରମ୍ଭ କରିପାରିବେ। ଏହାକୁ ଏକ ଆନ୍ଦୋଳନର ରୂପ ଦେଇ *ନିଜେ କରି ଶିଖିବା* ଆନ୍ଦୋଳନରେ ଏହାକୁ ଏକ ହତିଆର କରିପାରିବେ।

କେବଳ ପଢିଦେଲେ ବହିଟିରୁ ମଜା ମିଳିବନାହିଁ। ଆକୃତିଗୁଡିକ ନିଜେ କରିବା ଦରକାର। କାଗଜ ଖଣ୍ଡିଏ ଧରି ଭାଙ୍ଗିବାକୁ ପଡିବ ଓ ଅନ୍ୟମାନଙ୍କୁ କରାଇବାକୁ ହେବ। ପିଲାମାନଙ୍କ ସହିତ ସମ୍ପର୍କକୁ ନିବିଡ କରିବା ପାଇଁ ବାପା ମା' ବା ବଡ ଭାଇ ଭଉଣୀମାନେ ଏହି କାମରେ ହାତ ଦେଇପାରିବେ।

# କାଗଜରୁ ଆକୃତି

ପୁଷ୍ପଶ୍ରୀ ପଟ୍ଟନାୟକ
ବିମଳ ଦାସ

ସୃଜନିକା
ଜାଗମରା, ଖଣ୍ଡଗିରି,
ଭୁବନେଶ୍ୱର - ୭୫୧ ୦୩୦

# କାଗଜରୁ ଆକୃତି

ସଂକଳନ
ପୁଷ୍ପଶ୍ରୀ ପଟ୍ଟନାୟକ
ବିମଳ ଦାସ

ଚିତ୍ର
ସମ୍ପଦ ମହାପାତ୍ର
ପୁଷ୍ପଶ୍ରୀ ପଟ୍ଟନାୟକ

ପ୍ରକାଶକ
ସୃଜନିକା
ଜାଗମରା, ଖଣ୍ଡଗିରି
ଭୁବନେଶ୍ୱର ୭୫୧ ୦୩୦
ଫୋନ (୦୬୭୪) ୪୭୦୬୬୪

ମୁଦ୍ରଣ
ଶୋଭନ
୧୦୬, ଆଚାର୍ଯ୍ୟ ବିହାର
ଭୁବନେଶ୍ୱର

ପ୍ରଥମ ପ୍ରକାଶ: ଫେବୃଆରୀ ୧୯୯୮

**ମୂଲ୍ୟ: କୋଡ଼ିଏ ଟଙ୍କା**

# Fun with Paper Folding
(part II)

Compilation
Puspashree Pattnaik
Bimal Das

Illustration
Sampad Mohapatra
Puspashree Pattnaik

Publisher
SRUJANIKA
Jagamara, Khandagiri
Bhubaneswar 751 030
Tel: (0674) 470664

Printing
Shovan
106, Acharya Bihar
Bhubaneswar

First Edition: February, 1998

**Price: Twenty Rupees**

# ସୂଚୀପତ୍ର

# କାଗଜଭଙ୍ଗାର ମଜା

(ଓରିଗାମୀ ପ୍ରଥମ) ଖଣ୍ଡରେ ରହିଛି:

ଏ ଦିଗରେ ଆମର ପ୍ରଥମ ବହି ଥିଲା କାଗଜଭଙ୍ଗାର ମଜା। ଏଥିରେ କେତେଗୁଡିଏ ଅତି ସରଳ ଓ ସହଜ ଆକୃତି ଦେଇଥିଲୁ। ସେହି ସବୁ ଆକୃତିଗୁଡିକ ଅଭ୍ୟାସ କଲେ ଏ ବହିର ଆଧାର ଓ ଆକୃତିଗୁଡିକ କରିବା ପାଇଁ ସହଜ ହେବ। ସେ ବହିଟିରେ ଥିଲା:

# ମୁଖବନ୍ଧ

ପ୍ରତି ମଣିଷର ସୃଜନଶୀଳତା ରହିଛି । ତା' ପୁଣି ପିଲାମାନଙ୍କର ବେଶୀ ଥାଏ । ଯେ କୌଣସି ଜିନିଷଟିଏ ପାଇଲେ – ସେଇଟା କାଠିଟିଏ ହେଉ, ଗୋଡିଟିଏ ହେଉ, କଙ୍କଆ ମଞ୍ଜି ଖଣ୍ଡେ ହେଉ ବା କାଗଜ ଖଣ୍ଡେ ହେଉ ସେଥିରୁ ନୂଆ ନୂଆ ଜିନିଷ ତିଆରି କରିବାରେ ପିଲାଟି ଲାଗିଯାଏ । ତା'ର ଖୁଜୁବୁଜିଆ ମନ ସାଙ୍ଗକୁ ହାତ ବି କାମରେ ଲାଗିଯାଏ ।

କାଗଜ ଖଣ୍ଡେକୁ ମୋଡି ଭାଙ୍ଗି ଅନେକ ଆକୃତି କରିହେବ । ଖଣ୍ଡେ ଚ଼ାରିକୋଣିଆ କାଗଜକୁ ଭାଙ୍ଗି ଫୁଲଟିଏ, ଡବାଟିଏ ବା ବେଙ୍ଗଟିଏ କରିବା ବହୁତ ମଜାର କଥା । ଏହାକୁ ଆଖି ଆଗରେ ରଖି ଆମର ପ୍ରଥମ ପ୍ରକାଶନ ଥିଲା *କାଗଜର ଖେଳ* । ସେଥିରେ କାଗଜକୁ ନେଇ ବିଭିନ୍ନ ପ୍ରକାରର କାମ କିପରି କରିହେବ ତାହା ଦେଖାଇ ଦିଆଯାଇଥିଲା । ସେଥିରେ କେବଳ କାଗଜକୁ ଭାଙ୍ଗି କରି ଓରିଗାମୀର ଧାରାରେ ବିଭିନ୍ନ ଆକୃତି କରିବା ବିଷୟ ରହିଥିଲା । ଏହି ବହିଟିରେ ଓରିଗାମୀ ପ୍ରତି ଆଗ୍ରହ ସୃଷ୍ଟି ପାଇଁ କିଛି ଅତି ସରଳ ଆକୃତିର ବର୍ଣ୍ଣନା ଥିଲା । କେତେକ ସଙ୍କେତ, ଭାଙ୍ଗିବାର ପ୍ରଣାଳୀ ଆଦି ମୌଳିକ ତଥ୍ୟ କିଛି ମଧ୍ୟ ଦିଆଯାଇଥିଲା ।

ଏହି ବହିଟିରେ କିନ୍ତୁ ଅଲଗା ପ୍ରକାରର ଉପସ୍ଥାପନା ରହିଛି । ପ୍ରଥମ ବହିଟିରେ ଥିବା ମୌଳିକ ଭାଙ୍ଗ ସବୁକୁ ନେଇ କିଛି ଆଧାର ଗଢିବାର ଧାରା ପ୍ରଥମେ ଦିଆଯାଇଛି । ପରେ ସେହି ଆଧାରରୁ ତିଆରି ହୋଇପାରିଲା ଭଳି କିଛି ଆକୃତିର ବର୍ଣ୍ଣନା କରାଯାଇଛି । ବହିଟିରେ ସହଜରୁ ଆରମ୍ଭ କରି କିଛି ଜଟିଳ ଆକୃତି ପର୍ଯ୍ୟନ୍ତ ରହିଛି । ମୂଳରୁ ଅଭ୍ୟାସ କରିଗଲେ କଷ୍ଟ ଆକୃତି ସବୁ କରିବା ସହଜ ହେବ । ବହିଟିରେ ଯେଉଁ ସଙ୍କେତ ଓ ମୌଳିକ ଭାଙ୍ଗ ସବୁ ବ୍ୟବହାର କରାଯାଇଛି ସେଗୁଡିକର ବର୍ଣ୍ଣନା କାଗଜ ଭଙ୍ଗାର ମଜା ବହିଟିରେ ବୁଝାଇ ଦିଆଯାଇଥିଲା । ଏ ସବୁର ମୁଖ୍ୟ ଅଂଶ ଏହି ବହିରେ ମଧ୍ୟ ରହିଛି ।

ସବୁ କାମ ପାଇଁ ଦରକାର ହୁଏ *ଧୈର୍ଯ୍ୟ ଓ ଅଭ୍ୟାସ । ଓରିଗାମୀ* ପାଇଁ ବୋଧହୁଏ ଏହା ଆହୁରି ବେଶି ଜରୁରୀ । କିନ୍ତୁ କାମଟିରେ ଆଗ୍ରହ ଆସିଗଲେ ଓ ନିୟମିତ ଅଭ୍ୟାସ ବଳରେ ବାଟ ଜାଣିଗଲେ ସବୁ କିଛି ବେଶ୍ ସହଜ ଓ ମଜାଦାର ହୋଇଯାଏ । ତେଣୁ ଆମେ ଆଶା କରୁଛୁ ଯେ ସାଥିମାନେ ପ୍ରଥମ ଅସୁବିଧାରୁ ଡରିଯିବେ ନାହିଁ ଓ ତାଙ୍କର ଚେଷ୍ଟା ଚଳାଇ ରଖିବେ । କିଛି ଦିନ ପରେ ସଫଳତା ଯେ ନିଶ୍ଚୟ ଆସିବ ସେଥିରେ ସନ୍ଦେହ ନାହିଁ । ନିଜ ଚେଷ୍ଟାରୁ ପାଇଥିବା ସଫଳତା ଯେ କେତେ ବେଶୀ ମିଠା ତାହା ଚାଖି ଦେଖିବା ପାଇଁ ସମସ୍ତଙ୍କୁ ଆମର ସାଦର ନିମନ୍ତ୍ରଣ ।

*ସୃଜନିକା ପରିବାର*

## ଓରିଗାମୀ କ'ଣ ସତରେ କେବଳ ଜାପାନୀ....

ଅତି ପିଲାଦିନରୁ ଘରେ ଘରେ ପିଲା ଡଙ୍ଗା କରନ୍ତି, ହାତ ତିଆରି ଗୁଡି, ଉଡାଜାହାଜ ଉଡାନ୍ତି। ବାଳୁତ ଓ କିଶୋର ଅବସ୍ଥାରେ କାଗଜର ଫୁଲ ଝାଲର କାଟି ଘର ବାଡି ସଜାନ୍ତି। ବଡମାନେ କାଗଜରେ ଠୁଙ୍ଗା କରନ୍ତି, ଚିଠି ଲେଖି ମୁଦ ଦିଅନ୍ତି। ଏଭଳି ଅନେକ ରୂପରେ କାଗଜ ଭଙ୍ଗା ଆମ ଦେଶରେ ଓ ପୃଥିବୀର ଅନ୍ୟ ସବୁ ଦେଶରେ କେଉଁକାଳୁ ଚଳିଆସୁଛି।

ଏବେ ଅବଶ୍ୟ ସ୍ଥିତିଚଳଣି ବଦଳିବାରୁ ବର୍ଷାଦିନେ ବି ପିଲା ପାଣିକାଦୁଅ ହେଉନାହାନ୍ତି କି ଗୁଡି, ଉଡାଜାହାଜ ଉଡାଉନାହାନ୍ତି। ତଥାପି ଅନେକ ଏହାର ମୂଲ୍ୟ ବୁଝିଛନ୍ତି ଏବଂ ପିଲାଙ୍କ ହାତକୁ ଜୀବନ୍ତ କରିବାରେ ଏସବୁକୁ ଆଦରି ନେବାକୁ ପ୍ରସ୍ତୁତ ଅଛନ୍ତି। ସେହି ସାଥିମାନଙ୍କୁ କାଗଜ ଭଙ୍ଗାର ସୁଆଦ ମନେ ପକାଇ ଦେବାକୁ ଏଠାରେ ଡଙ୍ଗା ତିଆରିର ଭାଙ୍ଗଗୁଡିକ ଦେଉଛୁ। ନିଜ ଅଞ୍ଚଳରେ ଏଭଳି କାଗଜ କାମ ଅନେକ ଦିନରୁ ଚଳୁଥିବ। ସେସବୁ ବିଷୟରେ ଅଧିକ ଆମକୁ ଜଣାଇବାକୁ ଅନୁରୋଧ।



























# ଆରମ୍ଭ...

କାଗଜକୁ ଭାଙ୍ଗି ବିଭିନ୍ନ ଆକୃତି କରିବା ବହୁତ ମଜାର କଥା। ଏହା ପ୍ରଥମେ ଚୀନ ଦେଶରେ ଆରମ୍ଭ ହୋଇଥିଲା ଓ ପରେ ଜାପାନ ଦେଶରେ ପ୍ରସାର ଲାଭ କରିଥିଲା। ଏବେ ପୃଥିବୀର ସବୁ ଦେଶରେ ଏହି କାଗଜ ଭଙ୍ଗା ବା ଓରିଗାମୀ ବେଶ୍ ଆଦର ପାଉଛି।

ଓରିଗାମୀର ବିଭିନ୍ନ ଆକୃତି କରିବା ବେଳେ ଦେଖାଗଲା ଯେ କେତେଗୁଡ଼ିଏ ଆକୃତିର ପ୍ରଥମ କେତେ ପାଦ ସମାନ ଭାବରେ ହେଉଛି। ଏହି ପ୍ରାଥମିକ ଭାଙ୍ଗର ଫଳକୁ ଆଧାର (ବେଶ୍) କୁହାଯାଏ। ପ୍ରତି ଆଧାରରୁ ହୋଇ ପାରୁଥିବା ଆକୃତିଗୁଡ଼ିକୁ ଅଲଗା ଦଳରେ ରଖାଯାଏ। ପୃଥିବୀର ବିଭିନ୍ନ ଦେଶରେ ବ୍ୟବହାର କରା ଯାଉଥିବା ଆଧାର ସବୁ ଏକା ପ୍ରକାରର। କିନ୍ତୁ ସେଗୁଡ଼ିକର ନାଁ ବେଳେ ବେଳେ ଅଲଗା ହୋଇଥାଏ। ଯେପରି ଠିକିରି ଆଧାରକୁ କେଉଁଠି ଠିକିରି ଆଧାର ତ କେଉଁଠି ପ୍ରାଥମିକ ଆଧାର ବା ମୂଳ ଆଧାର – ୧ କୁହାଯାଏ। ନାଁ ସବୁ ଅଲଗା ହେଲେ ମଧ୍ୟ ଭାଙ୍ଗ ସେଇ ଏକା ଓ ସେଇ ଆଧାରକୁ ନେଇ ହେଉଥିବା ଆକୃତି ସବୁ ଏକା ଭଳି।

ଓରିଗାମୀରେ ଆଗୁଆ କାମ କରିବା ପାଇଁ ଏହି ଆଧାରଗୁଡ଼ିକୁ ଭଲ ଭାବରେ ଜାଣିବା ଦରକାର। ଏହି ବହିଟିରେ ଆମେ ବେଶୀ କାମରେ ଲାଗୁଥିବା ୧୧ଟି 'ମୂଳ' ଆଧାରର ବର୍ଣ୍ଣନା ଦେଇଛୁ। ସେ ସବୁ ଆଧାରକୁ ନେଇ କରି ହେଉଥିବା କିଛି ସହଜ ଆକୃତି ସବୁର ବର୍ଣ୍ଣନା ମଧ୍ୟ ରହିଛି। ଏହିତକ ରେଗାଟିଏ ମୂଳଦୁଆ ପକାଇ ପାରିବ। ଏତକ ଭଲ ଭାବରେ ଜାଣିଗଲେ ଅନ୍ୟ ଜଟିଳ ଆଧାର ଓ ଆକୃତି ଶିଖିବା ସହଜ ହେବ।

ଓରିଗାମୀର ମୂଳ ନିୟମ ଅନୁସାରେ କାଗଜରେ କେବଳ ଭାଙ୍ଗ ପକାଯାଏ। କାଟିବା ବା ଅଠା ଲଗାଇବା କଥା ନୁହେଁ। ଏବେ କିନ୍ତୁ କିଛି ଆକୃତି କରିବାରେ ସାମାନ୍ୟ କାଟିବା ପାଇଁ ପଡୁଛି। ଏ ବହିଟିରେ ମଧ୍ୟ ଆମେ କିଛି କଟା ରଖିଛୁ।

ତେବେ ମୂଳ କଥା ହେଉଛି ଓରିଗାମୀର ଆକୃତିଗୁଡ଼ିକ ଯିଏ ବି କେହି, ଯେ କୌଣସି ଜାଗାରେ ଥାଇ ମଧ୍ୟ କରିପାରିବ। ଏଥିପାଇଁ ଦରକାର କେବଳ ଖଣ୍ଡିଏ କାଗଜ, ଦୁଇଟି ହାତ, ଆଖି ଓ ସବୁଠୁ ଗୁରୁତ୍ୱପୂର୍ଣ୍ଣ ଜିନିଷ ହେଉଛି ଗୋଟିଏ ଆଗ୍ରହୀ ମନ। ଏଥିପାଇଁ ମନ ଲଗାଇବାକୁ ହେବ। ଧୈର୍ଯ୍ୟର ସହିତ ବସି ଧୀରେ ସୁସ୍ଥେ କାଗଜଟିକୁ ଭଲ କରି ଭାଙ୍ଗିବାକୁ ହେବ। ତରତର ହେଲେ କାଗଜଟି ବଙ୍କା ହୋଇଗଲେ ଶେଷରେ ଯେଉଁ ଆକୃତି ଆସିବା କଥା ତାହା ଠିକ୍ ଆସିବନାହିଁ। ତେଣୁ ଏଥିପାଇଁ ନିୟମିତ ଅଭ୍ୟାସ, ଧୀର ମନ ଓ ଧୈର୍ଯ୍ୟ ଦରକାର। ସାଙ୍ଗମାନଙ୍କ ସହିତ ମିଶି କାମଟି କଲେ ଆହୁରି ମଜା ହେବ। ସବୁଠାରୁ ବଡ କଥା ହେବ ନିଜେ ଶିଖିଥିବା କାମ ଅନ୍ୟକୁ ଶିଖାଇଲେ।

# ସୂଚନା ଓ ସଙ୍କେତ

ପ୍ରଥମ ବହି (କାଗଜ ଭଙ୍ଗାର ମଜା)ଟିରେ ଓରିଗାମୀର ଆରମ୍ଭ ଓ ବ୍ୟବହାର ପାଇଁ ସୂଚନା ସବୁ ରହିଥିଲା। ସେ ବହିଟି ଯେଉଁମାନଙ୍କ ପାଖରେ ନାହିଁ ସେମାନଙ୍କ ସୁବିଧା ପାଇଁ ଆମେ ଏହି ସବୁ ସୂଚନା ପୁଣି ଥରେ ଦେଉଛୁ। କାରଣ ଓରିଗାମୀ ଆରମ୍ଭ କରିବା ଆଗରୁ କେତେକ ସାଧାରଣ ନିୟମ ମାନିଲେ ଆକୃତିଗୁଡ଼ିକ ଠିକ ଆସିଥାଏ।

- ସବୁବେଳେ ଗୋଟିଏ ଟାଣ ସମତଳ ଜାଗାରେ କାମ କରିବା ଉଚିତ।
- କାଗଜଟିକୁ ସଠିକ ଭାବରେ ମାପି ପରିଷ୍କାର ଭାବରେ କାଟିବ।
- ଭାଙ୍ଗଗୁଡ଼ିକୁ ସାବଧାନ ହୋଇ ପକାଇବ ଯେପରି ଭାଙ୍ଗଗୁଡ଼ିକ ପରିଷ୍କାର ହେବ।
- ଭାଙ୍ଗ ଦେଲାବେଳେ ଆଙ୍ଗୁଠିଟିକୁ ଗୋଟିଏ ଥରରେ ଖସାଇନେବ। ରହି ରହି ଡିଆଇଁ ଡିଆଇଁ କଲେ ଭାଙ୍ଗ ଏତେ ଭଲ ପଡେନାହିଁ।
- ଆକୃତିଟି କଲାବେଳେ ଗୋଟିଏ ପାଦ ପରେ ଆଉ ଗୋଟିଏ ପାଦ କରିବ।
- ଯଦି ଆକୃତିଟି ଶେଷ ଯାଏଁ କରି ହେଲାନାହିଁ ତେବେ କିଛି ବ୍ୟସ୍ତ ନହୋଇ କାଗଜଟିକୁ ଖୋଲି ଭାଙ୍ଗଗୁଡ଼ିକୁ ଭଲ କରି ଦେଖ। ଲେଖା ଓ ଚିତ୍ରକୁ ଭଲରେ ଦେଖି ପୁଣି ଥରେ ମୂଳରୁ ଆରମ୍ଭ କର।

### *ଆୟତାକାର କାଗଜରୁ ବର୍ଗାକାର କାଗଜ*

ଓରିଗାମୀର ଅଧିକାଂଶ ଆକୃତି ବର୍ଗାକାର କାଗଜରୁ ଆରମ୍ଭ କରାଯାଏ।



୧. କାଗଜଟିକୁ ଏପରି ଭାଙ୍ଗ ଯେପରି ତା'ର ଉପର ଧାରଟି ବାଁ ପଟ ଧାର ସହ ପୂରା ମିଶିଯିବ।



୨. ତଳର ଅଧିକା ଅଂଶକୁ କାଟି ବା ଚିରି ବାହାର କରିଦିଅ।



୩. ତ୍ରିଭୁଜଟି ଖୋଲିଦିଅ। ଏବେ କାଗଜଟି ବର୍ଗାକାର ହୋଇଗଲା।

## ଭାଙ୍ଗିବ କିପରି (କୋଣିଆ ଭାଙ୍ଗ)







୧. କାଗଜଟି ଗୋଟିଏ ଟାଣ ସମତଳ ଜାଗାରେ କୋଣିଆ କରି ରଖ, ତଳ କୋଣଟିକୁ ଉଠାଇ ଉପର କୋଣ ସହିତ ମିଶାଅ।

୨. କୋଣ ଦୁଇଟିକୁ ମିଶାଇ ଗୋଟିଏ ହାତରେ ଚିପି ଧର। ଆର ହାତର ବିଶି ଆଙ୍ଗୁଠିଟି ତଳକୁ ଧାର ଯାଏଁ ଖସାଇଆଣ।

୩. ଧାର ଉପରେ ବିଶି ଆଙ୍ଗୁଠିଟିକୁ ଘ୍ୱପି କାଗଜର ଡାହାଣ ପଟକୁ ଖସାଅ। ତା'ପରେ ବାଁ ପଟକୁ ମଡାଇନିଅ।

## ଅଧା କରି ଭାଙ୍ଗ





୧. ତଳ ଦୁଇ କୋଣକୁ ଦୁଇ ହାତରେ ଧରି ତାକୁ ଉପର ଦୁଇ କୋଣ ଯାଏଁ ଉଠାଅ।

୨. ଉପର ଧାର ଓ ତଳ ଧାର ଯେପରି ପୂରା ମିଶିଯିବ। କାଗଜଟିକୁ ଏପଟ ସେପଟ କରି ଦେଖ ଯେପରି କୋଣ ଦୁଇଟି ପୂରା ମିଶୁଥିବ।





୩. ଗୋଟିଏ ହାତରେ ଉପର ଧାରକୁ ଜୋରରେ ଘ୍ୱପିଧରି ଆର ହାତର ବିଶି ଆଙ୍ଗୁଠିକୁ କାଗଜର ତଳ ଆଡକୁ ଖସାଇ ଆଣ।

୪. ଭାଙ୍ଗିସାରିବା ପରେ ଦେଖ ଯେପରି ଉପର କୋଣଗୁଡିକ ଓ ଧାରଗୁଡିକ ମିଶି ରହିଥିବ।

# ସଙ୍କେତ

ବହିରେ କେତେଗୁଡ଼ିଏ ସଙ୍କେତର ବ୍ୟବହାର କରାଯାଇଛି । ସେହି ସବୁ ସଙ୍କେତଗୁଡ଼ିକର ଅର୍ଥ ସବୁ ଦେଶରେ ଏକା । ଅନେକ ଜାଗାରେ କିଛି ଲେଖାନହୋଇ କେବଳ ସଙ୍କେତର ବ୍ୟବହାର କରାଯାଇଛି । ସେ ସବୁ ଜାଗାରେ ସଙ୍କେର ଅର୍ଥ ବୁଝି ସେହି ଅନୁସାରେ ଭାଙ୍ଗିବା ଦରକାର ।

---------

ଗାରରେ କାଗଜଟିକୁ ସାମନାକୁ ଭାଙ୍ଗ

-.-.-.-.-.-.-

ଗାରରେ କାଗଜଟିକୁ ପଛକୁ ଭାଙ୍ଗ



ସାମନାକୁ ଭାଙ୍ଗ



ପଛକୁ ଭାଙ୍ଗ



ଦାଗଟିଏ ଅଛି



କାଗଜଟିକୁ ଭାଙ୍ଗି ପୁଣି ଥରେ ଖୋଲିଦିଅ



କାଗଜଟିକୁ ଓଲଟାଇ ଦିଅ



ଚିତ୍ରଟି ବଡ କରି ଦିଆଯାଇଛି



କୋଣଟି ତଳକୁ ଦାବିଦିଅ



କଣାରେ ଫୁଙ୍କିଦିଅ



ଭିତରକୁ ପୂରାଇଦିଅ

# କପୋତ ଆଧାର



୧. କାଗଜଟିକୁ --- ଗାର ଉପରେ ତଳକୁ ଭାଙ୍ଗ।



୨. ଏହି ତିନିକୋଣିଆ ଦୁଇ ପରସ୍ତର ଆକୃତିକୁ କପୋତ ଆଧାର କୁହାଯାଏ।

# କପୋତ



୧. କପୋତ ଆଧାରରୁ ଆରମ୍ଭ କର। ଗାର ଉପରେ ଡାହାଣକୁ ଭାଙ୍ଗ।



୨. କେବଳ ଉପର ପରସ୍ତଟିକୁ ପୁଣି ଥରେ --- ଗାର ଉପରେ ବାଁକୁ ଭାଙ୍ଗ।



୩. --- ଗାର ଉପରେ ମଝିରୁ ତଳକୁ ଭାଙ୍ଗ ଯେପରି ଉପର କୋଣ ତଳ କୋଣ ସହ ମିଶିଯିବ ।



୪. --- ଗାର ଉପରେ ଉପର ପରସ୍ତଟି ଉପରକୁ ଭାଙ୍ଗ ଓ ତଳ ପରସ୍ତଟି ତଳପଟେ ଉପରକୁ ଭାଙ୍ଗି ଡେଣା ତିଆରି କର ।



୫. ଡାହାଣ ପଟର କୋଣଟି ଦୁଇ ପରସ୍ତର ଭିତରକୁ ଭାଙ୍ଗି ଚଢ଼େଇର ତଣ୍ଟ ତିଆରି କର ।



୬. କପୋତଟି ହୋଇଗଲା ।

# ପାଲଟଣା ଡଙ୍ଗା





୧. ଗୋଟିଏ କପୋତ ଆଧାର ତିଆରି କର।

୨. ତଳ କୋଣଟିକୁ ଉପରକୁ ଭାଙ୍ଗ।





୩. ତ୍ରିଭୁଜର ତଳ କୋଣଟିକୁ –.–.– ଗାର ଉପରେ ପଛକୁ ଭାଙ୍ଗ।

୪. ପାଲଟଣା ଡଙ୍ଗା ତିଆରି ହୋଇଗଲା।

# ପେଙ୍ଗୁଇନ୍



୧. କପୋତ ଆଧାରରୁ ଆରମ୍ଭ କର। ଉପର ପରସ୍ତର ବାଁ କୋଣଟି --- ଗାର ଉପରେ ଡାହାଣ ପଟକୁ ଭାଙ୍ଗ।



୨. ତଳ ପରସ୍ତଟିକୁ -.-.- ଗାର ଉପରେ ପଛ ପଟେ ଡାହାଣ ଆଡକୁ ଭାଙ୍ଗ।



୩. --- ଗାର ଉପରେ ଥରେ ଆଗକୁ ଓ ଥରେ ପଛକୁ ଭାଙ୍ଗି ଭଲ କରି ଘ୍ରପିଦିଅ ଯେପରି ଦାଗ ରହିବ।



୪. ଡାହାଣ ଧାରର ← ପାଖରେ ଡାହାଣ ହାତର ଆଙ୍ଗୁଠିଟି ରଖି ପରସ୍ତ ଦୁଇଟିକୁ ଏପରି ଭାଙ୍ଗ ଯେପରି ଉପର ପରସ୍ତଟି ସାମନା ପଟକୁ ଓ ତଳ ପରସ୍ତଟି ପଛ ଆଡକୁ ଭାଙ୍ଗି ହୋଇ ରହିବ। ଭଙ୍ଗା ହେଲା ପରେ ପରସ୍ତ ଦୁଇଟି ଡାହାଣ ଧାର ଉପରେ ଛତା ଭଳି ରହିବ। ତା'ପରେ ତାକୁ ଘ୍ରପିଦିଅ।



୫. ତଳ କୋଣଟିକୁ -.-.- ଗାର ଉପରେ ଭିତରକୁ ଭାଙ୍ଗିଦିଅ। ପେଙ୍ଗୁଇନଟି ହୋଇଗଲା।

# ଉଡନ୍ତା ଚିଲ





୧. କପୋତ ଆଧାରରୁ ଆରମ୍ଭ କର। ଅଧାରୁ ଉପରକୁ ଭାଙ୍ଗ ଓ ଓଲଟାଇ ଦିଅ।

୨. କାଗଜଟିକୁ --- ଗାରରେ ଉପର ବିନ୍ଦୁ ଯାଏଁ ଭାଙ୍ଗ ଓ ପଛରେ ଥିବା କୋଣ ଦୁଇଟିକୁ ତଳକୁ ଖୋଲିଦିଅ।





୩. ତଳର ସିଧା ଧାରକୁ --- ଗାରରେ ଉପରକୁ ଭାଙ୍ଗ। କୋଣ ଦୁଇଟି ଉପରକୁ ରହିବ।

୪. ସାମନାକୁ ଥିବା ତ୍ରିଭୁଜଟିକୁ --- ଗାର ଉପରେ ତଳକୁ ଭାଙ୍ଗିଦିଅ।





୫. କାଗଜଟିକୁ ଓଲଟାଇ ଦିଅ ଓ ତଳ କୋଣକୁ ଧାରରେ ମିଶାଇ ଉପରକୁ ଭାଙ୍ଗ।

୬. କୋଣଟିକୁ --- ଗାର ଉପରେ ତଳକୁ ଭାଙ୍ଗ।





୭. ମଝିରୁ ଭାଙ୍ଗିଦିଅ।

୮. --- ଗାର ଉପରେ ଉପର ପରସ୍ତଟି ଆଗପଟକୁ ଓ ତଳ ପରସ୍ତଟି ପଛପଟକୁ ତଳକୁ ତଳମୁହାଁ କରି ଭାଙ୍ଗିଦିଅ। ଭାଙ୍ଗ ଦୁଇଟିକୁ ଅଧା ଖୋଲିଦିଅ ଯେପରି ଡେଣା ଦୁଇଟି ଦେହ ସହିତ ୯୦ ଡିଗ୍ରୀ କୋଣ କରି ରହିବ।



୯. ଉଡନ୍ତା ଚିଲ ହୋଇଗଲା।

# ଟୋପି ଆଧାର



୧. ଉପର କୋଣକୁ ତଳ କୋଣ ଯାଏଁ ଭାଙ୍ଗ।



୨. ବାଁ ଓ ଡାହାଣ କୋଣ ଦୁଇଟିକୁ ତଳ କୋଣ ଯାଏଁ ଭାଙ୍ଗ।





୩. ଏହି ଆକୃତିଟି ହେଉଛି ଟୋପି ଆଧାର।

# ଟୋପି





୧. ଖଣ୍ଡେ କାଗଜ ଭାଙ୍ଗି ଟୋପି ଆଧାର ତିଆରି କର। ଉପର ପରସ୍ତର ତଳ କୋଣ ଦୁଇଟିକୁ ଉପର କୋଣ ଯାଏଁ ଭାଙ୍ଗ।

୨. ଉପର ପରସ୍ତର କୋଣ ଦୁଇଟିକୁ ––– ଗାର ଉପରେ ବାହାରକୁ ଭାଙ୍ଗ।





୩. ତଳ ତ୍ରିଭୁଜର ଉପର ପରସ୍ତକୁ ––– ଗାର ଉପରେ ଉପରକୁ ଭାଙ୍ଗ।

୪. ପୁଣି ଥରେ ––– ଗାର ଉପରେ ଉପରକୁ ଭାଙ୍ଗ।





୫. ତଳ ପରସ୍ତ କାଗଜଟିକୁ --- ଗାର ଉପରେ ପଛକୁ ଭାଙ୍ଗିଦିଅ।

୬. ଦୁଇ ପରସ୍ତକୁ ଅଳ୍ପ ଖୋଲିଦେଲେ ଭାଙ୍ଗଗୁଡିକ ଖସିବନାହିଁ।



୭. ଟୋପି ହୋଇଗଲା।

# ଟିକିମାଛ



୧. ଟୋପି ତିଆରି କର।



୨. ତଳୁ ପରସ୍ତ ଦୁଇଟିକୁ ଅଲଗା କରିଦିଅ।



୩. ଦୁଇ କଡର କୋଣ ମିଶାଇ ଦେଇ ଭଲ କରି ଚୃପିଦିଅ।



୪. ଡାହାଣ (ଟୋପିର ପଛ) ପଟର ତଳ ଧାରକୁ ଦୁଇ ତୃତୀୟାଂଶ ଯାଏଁ କାଟିଦିଅ ଯେପରି ଦୁଇଟିଯାକ ପରସ୍ତ କଟିବ।

୫. --- ଗାର ଉପରେ ଥରେ ଆଗକୁ ଓ ଥରେ ପଛକୁ ଭାଙ୍ଗି ଭଲ କରି ଚୃପିଦିଅ ଯେପରି ଦାଗ ରହିବ।







୬. ତଳୁ ଅଳ୍ପ ଖୋଲିଦିଅ। କଟା ହୋଇଥିବା ଅଂଶକୁ ଉପରକୁ ଉଠାଅ ଓ...

୭. ... ବାହାରକୁ ଟାଣିଦିଅ।





୮. ଭଲ କରି ଚ୍ରିପିଦିଅ।

୯. --- ଗାର ଉପରେ ତଳ ଓ ଉପର ପରସ୍ତଟି ଭାଙ୍ଗି ଭିତରକୁ ଭାଙ୍ଗିଦିଅ।



୧୦. ଚିକିମାଛ ହୋଇଗଲା।

# ବାଦୁଡି





୧. ଟୋପି ଆଧାରରୁ ଆରମ୍ଭ କର। ଖୋଲା ପଟଟି ତଳକୁ ରଖ। --- ଗାରରେ ଉପର ପରସ୍ତ ଦୁଇଟି ବାହାରକୁ ଖୋଲ।

୨. --- ଗାର ଉପରେ ଦୁଇ କଡକୁ ମଝି ଯାଏଁ ଭାଙ୍ଗ।





୩. -.-.- ଗାର ଉପରେ ମଝିରୁ ଅଧା କରି ପଛ ଆଡକୁ ଭାଙ୍ଗ।

୪. ଉପର ଓ ତଳ କୋଣ ଦୁଇଟିକୁ --- ଗାର ଉପରେ ଥରେ ଆଗକୁ ଓ ଥରେ ପଛକୁ ଭାଙ୍ଗି ଭଲ କରି ଚିପିଦିଅ ଯେପରି ଦାଗ ରହିବ।



୫. କାଗଜଟିକୁ ଅଳ୍ପ ଖୋଲି ଦେଇ ଭାଙ୍ଗ ଜାଗାରେ ତଳକୁ ମୋଡିଦିଅ ଓ ପୂର୍ବ ଭଳି ପୁଣି ଥରେ ମଝିରୁ ଭାଙ୍ଗି ଅଧା କରିଦିଅ। ଉପର କୋଣଟି ଥଣ୍ଟ ଓ ତଳଟି ଲାଞ୍ଜ ହୋଇଯିବ। ବାଦୁଡିଟି ହୋଇଗଲା।

# ଗୁଡି ଆଧାର





୧. ଗାର ଉପରେ ବାଁ ଓ ଡାହାଣ କୋଣ ଦୁଇଟିକୁ ମଝି ଯାଏଁ ଭାଙ୍ଗ।

୨. ଗୁଡି ଆଧାର ହୋଇଗଲା।

# ହଂସ







୧. ଗୁଡି ଆଧାରରୁ ଆରମ୍ଭ କର। କାଗଜଟିକୁ ଓଲଟାଇ ଦିଅ।

୨. --- ଗାର ଉପରେ ବାଁ କୋଣଟି ଡାହାଣ କୋଣ ଯାଏଁ ଅଧା କରି ଭାଙ୍ଗ।



୩. ସେହି କୋଣଟିକୁ ପୁଣିଥରେ --- ଗାର ଉପରେ ବାଁକୁ ଭାଙ୍ଗିଦିଅ।



୪. -.-.- ଗାର ଉପରେ ମଝିରୁ ଅଧା କରି ପଛକୁ ଭାଙ୍ଗ।



୫. ଥଣ୍ଟଟିକୁ ଆଙ୍ଗୁଠିରେ ଅଳ୍ପ ଉଠାଇ ଦେଇ ଚିପିଦିଅ ଓ ମୁଣ୍ଡଟିକୁ ଧରି ଉପରକୁ ଉଠାଇଦିଅ।



୬. ହଂସ ହୋଇଗଲା।

# ଠେକୁଆ





୧. ଗୁଡ଼ି ଆଧାରରୁ ଆରମ୍ଭ କର। ଗାର ଉପରେ ଡାହାଣ ପଟଟି ବାଁ ପଟକୁ ଭାଙ୍ଗ।

୨. ପୁଣି ଥରେ --- ଗାର ଉପରେ ଡାହାଣ ପଟକୁ ଓ ବାହାରକୁ ଭାଙ୍ଗ।





୩. ଗାର ଉପରେ ମଝିରୁ ଅଧା କରି ଭାଙ୍ଗ।

୪. --- ଗାର ଉପରେ ଭାଙ୍ଗି ଭଲ କରି ଘୃପିଦିଅ ଯେପରି ଦାଗ ରହିଯିବ।





୫. ବାଁ କୋଣଟିକୁ ଦାଗ ଯାଏଁ କାଟିଦିଅ।

୬. ଭାଙ୍ଗ ପାଖରୁ କଟା ଅଂଶ ଦୁଇଟିକୁ ଦୁଇପଟରେ ଉପରକୁ ଉଠାଇ କାନ ତିଆରି କର।



୭. ଠେକୁଆ ହୋଇଗଲା।

# ଶୁଆ



୧. ଗୁଡି ଆଧାରରୁ ଆରମ୍ଭ କର। ବାମ ପାଖଟିକୁ –·–·– ଗାର ଉପରେ ପଛକୁ ଭାଙ୍ଗିଦିଅ।



୨. ବାଁ ପାଖର ଦୁଇ କୋଣକୁ ଗାର ଉପରେ ମଝିଯାଏଁ ଭାଙ୍ଗି ଭଲ କରି ଚିପିଦିଅ, ଯେପରି ଦାଗ ରହିଯିବ।



୩. ଭାଙ୍ଗ ଦୁଇଟିକୁ ଖୋଲିଦିଅ।



୪. ଭାଙ୍ଗ ପାଖରେ ଆଙ୍ଗୁଠିରେ ଚିପି ଧରି ଉପରର ବାଁ କୋଣଟିକୁ ଏପରି ଖୋଲ...



୫. ... ଯେପରି ସେହି କୋଣଟି ଆସି . ପାଖରେ ମିଶିବ। ଭାଙ୍ଗଟିକୁ ଭଲ କରି ଗ୍ରିପିଦିଅ। ତଳ କୋଣଟି ମଧ୍ୟ ସେହିଭଳି ଖୋଲିଦିଅ। ଉପର ଓ ତଳ ଛୋଟ କୋଣ ଦୁଇଟିକୁ --- ଗାର ଉପରେ ବାହାରକୁ ଭାଙ୍ଗିଦିଅ।



୬. ୧ମ ଗାର (-.-.-) ଉପରେ ପଛକୁ ଓ ୨ୟ ଗାର (---) ଗାର ଉପରେ ପୁଣି ଥରେ ସାମନାକୁ ଭାଙ୍ଗିଦିଅ।



୭. --- ଗାର ଉପରେ ଅଧା କରି ଭାଙ୍ଗ।



୮. ବାଁ କୋଣଟିକୁ --- ଗାର ଉପରେ ଭାଙ୍ଗି ଥଣ୍ଟ ତିଆରି କର।



୯. ଡାହାଣ ପାଖ ଲାଞ୍ଜଟିକୁ ଅଳ୍ପ ଉପରକୁ ଉଠାଇ ଦେଇ ଚିପିଦିଅ। ଗୋଟିଏ ପ୍ରକାରର ଶୁଆ ହୋଇଗଲା।



୧୦. ଦାଗ ଯାଏଁ କାଟି ଦିଅ।



୧୧. --- ଗାର ଉପରେ କଟା ହୋଇଥିବା ଯାଏଁ ଭାଙ୍ଗି ଉପରକୁ ଉଠାଇ ଦିଅ। ଶୁଆର ଡେଣା ହୋଇଗଲା।



୧୨.ଏହା ଆଉ ଗୋଟିଏ ପ୍ରକାରର ଶୁଆ ହୋଇଗଲା।

# ଗେଣ୍ଡା



୧. ଗୁଡି ଆଧାରରୁ ଆରମ୍ଭ କର। --- ଗାର ଉପରେ ତଳ ଓ ଉପରର କୋଣ ଦୁଇଟିକୁ ମଝି ଯାଏଁ ଭାଙ୍ଗ।



୨. --- ଗାର ୧ ଉପରେ ଡାହାଣକୁ ଭାଙ୍ଗି ପୁଣି ଥରେ ଗାର ୨ (–.–.–)ରେ ବାଁକୁ ଭାଙ୍ଗିଦିଅ।



୩. ଆକାରଟିକୁ ମଝିକୁ ଭାଙ୍ଗିଦିଅ।





୪. ଡାହାଣ କୋଣଟିକୁ --- ଗାର ଉପରେ ଭାଙ୍ଗି ଭିତର ପଟେ ଉପରକୁ ଉଠାଇ ଦିଅ।

୫. କୋଣଟିକୁ ଅଳ୍ପ କାଟି ତଳକୁ ମୋଡିଦିଅ।



୬. ଗେଣ୍ଡାଟି ହୋଇଗଲା।

# ଠିକିରି ଆଧାର





୧. କାଗଜଟିକୁ - - - ଗାର ଉପରେ ଉପର-ତଳ, କଡରୁ କଡ ଓ କୋଣରୁ କୋଣ ଭାଙ୍ଗି ଚାପିଦିଅ ଓ ଖୋଲିଦିଅ।

୨. କାଗଜଟିକୁ କୋଣରୁ ଅଧା କରି ଭାଙ୍ଗିଦିଅ।





୩. କାଗଜର ଡାହାଣ ଅଧାକ ଉପରକୁ ଟେକିଦିଅ ଓ ଦୁଇ ପରସ୍ତ କାଗଜକୁ ଅଳ୍ପ ଖୋଲିଧର। ଉପର କୋଣକୁ ଚାପି ଭିତରକୁ ପୂରାଇଦିଅ।

୪. କାଗଜର ଡାହାଣ ଅଧା ଏବେ ଚାରି ପରସ୍ତ ହୋଇଯିବ

୫. ବାଁ ପଟ ଅଧାକୁ ସେହିପରି ଭାଙ୍ଗିଦିଅ। ଏହା ଆମର ଠିକିରି ଆଧାର ହୋଇଗଲା।



# ତାରା ଡବା





୧. ଠିକିରି ଆଧାରରୁ ଆରମ୍ଭ କର। ଏହାର ଖୋଲା ପଟଟି ଉପରକୁ ରଖ। ଉପର ପରସ୍ତର ବାଁ ଓ ଡାହାଣ ଧାର --- ଗାର ଉପରେ ମଝିଯାଏଁ ଭାଙ୍ଗ।

୨. --- ଗାର ଉପରେ ଭାଙ୍ଗି ଭଲ କରି ଚିପିଦିଅ, ଯେପରି ଦାଗ ରହିଯିବ।





୩. ବାଁ ପଟର ଅଧା ଯାଏଁ ଧାରଟିକୁ ଉପରକୁ ଉଠାଅ।

୪. ଦୁଇ ପରସ୍ତକୁ ଅଲଗା କରି ଉପରର କୋଣକୁ ଭିତରକୁ...



୫. ...(ତଳକୁ) ଘୁପିଦିଅ।



୬. ଡାହାଣ ପଟର ଧାରକୁ ଉଠାଇ ତା'ର କୋଣକୁ ସେହିଭଳି ଭିତରକୁ ପୂରାଇଦିଅ।



୭. କାଗଜକୁ ଓଲଟାଇ ଦିଅ।





୮. ଆରପଟ ଭଳି ୩-୫ ପାଦ ଯାଏଁ ଭାଙ୍ଗିଦିଅ।

୮ କ. ବାଁ ଓ ଡାହାଣ ଧାରକୁ -.-.- ଗାରରେ ପଛପଟକୁ ଦୁଇ ସ୍ତରର ଭିତରକୁ ଭାଙ୍ଗିଦିଅ।



୯. ତଳ ପଟର ବାହାର ଦୁଇ ଧାରକୁ ମଧ୍ୟ ସେହିଭଳି ଭିତରକୁ ଭାଙ୍ଗିଦିଅ।



୧୦. --- ଗାର ଦୁଇଟି ଉପରେ ଥରେ ସାମନାକୁ ଓ ଥରେ ପଛକୁ ଭାଙ୍ଗି ଭଲ କରି ଚାପିଦିଅ ଯେପରି ଦୁଇଟି ଦାଗ ରହିଯିବ।



୧୧. ଉପରର ଚାରୋଟି ଯାକ ପରସ୍ତକୁ ପଛ ଆଡକୁ ଭାଙ୍ଗି ଚାପିଦିଅ।



୧୨. ଉପର ଚାରୋଟି ଭାଙ୍ଗ ଭିତରୁ ବାଁ ଓ ଡାହାଣ ପଟର ଭାଙ୍ଗ ଦୁଇଟିକୁ ଧରି ଧୀରେ ଧୀରେ ଟାଣି ଖୋଲ।



୧୩. ଉପରର ଧାରଗୁଡ଼ିକୁ ଭଲ କରି ଚିପିଦିଅ ।



୧୪. ଡବାର ତଳପଟୁ ଉପର ଆଡକୁ ଅଳ୍ପ ଚିପି ଦେଲେ ଡବାଟି ପୂରା ଖୋଲିଯିବ ।



୧୫. ତଳ ଧାରଗୁଡ଼ିକ ଭଲ କରି ଚିପିଦିଅ ।



୧୬. ତାରା ଡବା ହୋଇଗଲା ।

# ଲିଲି





୧. ଠିକିରି ଆଧାରରୁ ଆରମ୍ଭ କର। ଖୋଲା ମୁହଁ ଉପରକୁ ରଖି ଓ ଗାର ଉପରେ ଦୁଇ ପଟରୁ ମଝି ଯାଏଁ ଭାଙ୍ଗ।

୨. ଉପର ପରସ୍ତର ଡାହାଣ ତ୍ରିଭୁଜକୁ ଉପରକୁ ଉଠାଇ ଠିଆ କର।





୩. ଦୁଇ ପରସ୍ତକୁ ଫାଙ୍କ କରି ଉପର କୋଣଟିକୁ ଚିପି ତଳେ ମିଶାଇଦିଅ।

୪. --- ଗାର ଉପରେ ଥରେ ଆଗକୁ ଓ ଥରେ ପଛକୁ ଭାଙ୍ଗି ଘୃପିଦିଅ ଯେପରି ଦାଗଟି ରହିବ।







୫. ଉପରର ବାଁ ଓ ଡାହାଣ ଧାରକୁ ମଝି ଯାଏଁ ଭାଙ୍ଗିଦିଅ...

୬. ... ଓ ଖୋଲିଦିଅ ।





୭. ଉପରର ଧାରଟି ତଳ ଆଡକୁ ଆଣି ଗ୍ରିପିଦିଅ ଯେପରି ବାଁ ଓ ଡାହାଣର ଦୁଇ ଖୋଲା ପଟ ମଝି ଯାଏଁ ଆସିବ । ମଝି ଗାର ଯାଏ ଆଣି ତାକୁ ଭଲ କରି ଗ୍ରିପିଦିଅ ।

୮. ତଳର ଛୋଟ ତ୍ରିଭୁଜଟିକୁ --- ଗାରରେ ଉପରକୁ ଭାଙ୍ଗ ।





୯. ଉପର ପରସ୍ତର ବାଁ ଅଧାକ ଭାଙ୍ଗି ଡାହାଣ ଅଧା ସହ ମିଶାଇ ଗ୍ରପିଦିଅ।

୧୦. ଏବେ ବାଁ ପଟର ତ୍ରିଭୁଜରେ ମଧ୍ୟ ୨-୮ ପାଦ ଯାଏଁ ଭାଙ୍ଗ।







୧୧. କାଗଜଟିକୁ ଓଲଟାଇ ଦେଇ ତଳ ପଟର ବାଁ ଓ ଡାହାଣ ପଟକୁ ମଧ୍ୟ ସେହିଭଳି ଭାଙ୍ଗ। ତାହା ଏହିଭଳି ଦେଖାଯିବ।

୧୨. ଯେଉଁ ଗ୍ରରିପଟରେ କୌଣସି ଭାଙ୍ଗ ନଥିବ ସେହି ପଟଗୁଡ଼ିକ --- ଗାର ଉପରେ ମଝି ଭାଙ୍ଗ ଯାଏଁ ଭାଙ୍ଗ।







୧୩. --- ଗାର ଉପରେ ଭାଙ୍ଗି ଭଲ କରି ଚ୍ପିଦିଅ ଯେପରି ଦାଗ ରହିବ।

୧୪. ଦୁଇ କଡର ପାଖୁଡା ଦୁଇଟି ଧରି ଧୀରେ ଧୀରେ ଟାଣି ବାହାର କର।





୧୫. ସେହିପରି ଧୀରେ ଧୀରେ ଟାଣି ବାଁ ଓ ଡାହାଣ ପାଖୁଡା ମଧ୍ୟ ବାହାର କର।

୧୬. ପାଖୁଡାଗୁଡିକରେ ଗୋଟିଏ ପେନ୍‌ସିଲ୍ ଗୁଡାଇ ଖୋଲି ଦେଲେ ସେଗୁଡିକ ମୋଡି ହୋଇ ରହିବ।

୧୭. ଲିଲି ଫୁଲଟି ହୋଇଗଲା।



# ଫୁଲ





୧. ଠିକିରି ଆଧାରରୁ ଆରମ୍ଭ କର। ଖୋଲା ପଟକୁ ଉପର ଆଡ଼କୁ ରଖ। – –– ଗାର ଉପରେ ଉପର ପଟର ବାଁ ଓ ଡାହାଣ କୋଣକୁ ମଝି ଯାଏଁ ଭାଙ୍ଗ।

୨. ତଳ ପଟରେ ମଧ୍ୟ ସେହିପରି ଭାଙ୍ଗି ଦିଅ।





୪. ପଛ ପାଖେ ମଧ୍ୟ ସେପରି ଭାଙ୍ଗ ଓ ଧାରଗୁଡ଼ିକୁ ଭଲ କରି ଚିପି ଦିଅ।

୩. ଆଗପାଖର ତଳ ଦୁଇ ଧାରକୁ --- ଗାର ଉପରେ ମଝି ଯାଏଁ ଭାଙ୍ଗ।



୫. --- ଗାର ଉପରେ ଥରେ ଆଗକୁ ଓ ଥରେ ପଛକୁ ଭାଙ୍ଗି ଚିପିଦିଅ ।



୬. ପାଖୁଡାଗୁଡିକୁ ସାମନା ପଟକୁ ଖୋଲ ।



୭. ଫୁଲଟି ହୋଇଗଲା ।

# ବେଲୁନ୍ ଆଧାର





୧.କାଗଜଟିକୁ --- ଗାର ଉପରେ ଉପର ତଳ, କଡରୁ କଡ ଓ କୋଣକୁ କୋଣ ଭାଙ୍ଗି ଗ୍ରିପିଦିଅ ଓ ଖୋଲିଦିଅ।

୨. କାଗଜଟିକୁ ଉପର-ତଳ ଅଧା କରି ଭାଙ୍ଗିଦିଅ।





୩. ଦୁଇ ପରସ୍ତିଆ କାଗଜଟିକୁ ଅଧାକରି କଡୁଆ ଭାଙ୍ଗିଦିଅ ଓ ୯୦° ଖୋଲିଦିଅ।

୪. ଉଠି ରହିଥିବା ଖଣ୍ଡର ଦୁଇ ପରସ୍ତକୁ ଖୋଲିଦିଅ।



୫. ଉପର କୋଣରୁ ତ୍ରିଭୁଜଟିକୁ ଖୋଲିଦିଅ।



୬. ତ୍ରିଭୁଜର ବାମ ଅଧାକୁ ଉଠାଇ ଡାହାଣ ଅଧା ସାଙ୍ଗରେ ମିଶାଇ ଦିଅ।



୭. ସେହିପରି ବାଁ ପଟର ଅଧାକ ମଧ୍ୟ ଭାଙ୍ଗିଦିଅ।



୮. ବେଲୁନ୍ ଆଧାର ହୋଇଗଲା।

# ଫୁଲଦାନୀ



୧. ବେଲୁନ୍ ଆଧାରରୁ ଆରମ୍ଭ କର । --- ଗାର ଉପରେ ବାଁ ପଟଟି ଡାହାଣ ପଟ ଉପରକୁ ଭାଙ୍ଗ ।



୨. --- ଗାର ଉପରେ ଉପର ପରସ୍ତର ଡାହାଣ ପଟ କୋଣଟିକୁ ବାଁ ପଟକୁ ଭାଙ୍ଗ ।



୩. ଉପରକୁ ଉଠି ରହି ଥିବା ଛୋଟ ତ୍ରିଭୁଜଟିକୁ ପଛ ଆଡକୁ ଓ ଭିତର ପାଖକୁ ଭାଙ୍ଗ ।




୪. ୧ମ ଗାର ଉପରେ ବାଁ ପଟକୁ ଭାଙ୍ଗି ୨ୟ ଗାର ଉପରେ ପୁଣିଥରେ ଡାହାଣ ଆଡକୁ ଭାଙ୍ଗ ।



୫. ୩-୪ ପାଦ ଭଳି ଉଠି ରହିଥିବା ତ୍ରିଭୁଜଟିକୁ ପଛ ଆଡକୁ ଓ ଭିତର ପାଖକୁ ଭାଙ୍ଗ।



୬. ଆଧାରଟିକୁ ଓଲଟାଇ ଦିଅ ଓ ପଛପାଖରେ ମଧ୍ୟ ସେହିଭଳି ଭାଙ୍ଗ।



୭. --- ଗାର ଉପରେ ଭଲ କରି ଭାଙ୍ଗି ଘୃପିଦିଅ ଓ ଖୋଲିଦିଅ ଯେପରି ଦାଗଟି ରହିଯିବ।



୮. ଡବାଟି ଖୋଲିଦିଅ। ତଳପଟଟି ଅଳ୍ପ ଭିତରକୁ ଠେଲିଦିଅ ଯେପରି ତାହା ଘୃରିକୋଣିଆ ହୋଇଯିବ। ଧାରଗୁଡିକ ଭଲ କରି ଘୃପିଦିଅ।



୯. ଫୁଲଦାନୀଟି ହୋଇଗଲା।

# ତାରା





୧. ୬ଟି ବେଲୁନ୍ ଆଧାର ତିଆରି କର।

୨. ପ୍ରତ୍ୟେକର ୪ଟି ଯାକ ପାଖୁଡ଼ାକୁ ପରସ୍ପରଠାରୁ ଅଲଗା କରି ଧର।





୩. ପାଖୁଡ଼ାଗୁଡ଼ିକ ଯୋଡ଼ିବା ଆରମ୍ଭ କର। ସେଗୁଡ଼ିକ ଏପରି ଯୋଡ଼ିବ ଯେପରି ପ୍ରତ୍ୟେକ ଆଧାରର ଦୁଇଟି ପାଖୁଡ଼ା ପାଖ ଆଧାରର ପାଖୁଡ଼ା ଭିତରେ ପଶିବ ଓ ଅନ୍ୟ ଦୁଇଟି ପାଖୁଡ଼ା ଭିତରେ ପାଖରେ ଥିବା ଆଧାରର ପାଖୁଡ଼ା ପଶିବ। ଅର୍ଥାତ୍ ଦୁଇଟି ପାଖୁଡ଼ା ଭିତରେ ଓ ଦୁଇଟି ଅନ୍ୟର ଉପରେ ରହିବ। ଏହିପରି ଛଅଟି ଯାକ ଆଧାର ଯୋଡ଼ିଦିଅ।

୪. ତାରାଟିଏ ମିଳିଯିବ।



# ଦିନରାତି ଆଧାର



୧. କାଗଜଟିକୁ ଉପର-ତଳ ଭାଙ୍ଗି ଖୋଲିଦିଅ।



୨. ପୁଣିଥରେ କଡୁଆ ଭାଙ୍ଗି ଖୋଲିଦିଅ। ମଝିବିନ୍ଦୁଟି ମିଳିଯିବ।



୩. ଗ୍ରରୋଟିଯାକ କୋଣକୁ ମଝି ବିନ୍ଦୁଯାଏଁ ଭାଙ୍ଗ।



୪. ଏହା ହେବ ଆମର ଦିନରାତି ଆଧାର।

# ଡବା



୧. ଦିନରାତି ଆଧାରରୁ ଆରମ୍ଭ କର। ---- ଗାରରେ ଉପର ଓ ତଳ ଧାରକୁ ମଝି ଯାଏଁ ଭାଙ୍ଗ ଓ ଖୋଲିଦିଅ।



୨. ବାଁ ଓ ଡାହାଣ ଧାର ଦୁଇଟିକୁ ମଧ୍ୟ ---- ଗାରରେ ମଝି ଯାଏଁ ଭାଙ୍ଗି ଖୋଲିଦିଅ।



୩. ବାଁ ଓ ଡାହାଣ ପଟର ତ୍ରିଭୁଜ ଦୁଇଟିକୁ ବାହାରକୁ ଖୋଲିଦିଅ।



୪. ---- ଗାର ଉପରେ ଉପର ଓ ତଳ ଧାରକୁ ମଝିଯାଏଁ ଭାଙ୍ଗ...



୫. ... ଓ ଖୋଲିଦିଅ।



୬. ଚାରି କୋଣରେ —•— ଗାର ଉପରେ ପଛ ଆଡକୁ ଭାଙ୍ଗି ଭଲ କରି ଚାପିଦିଅ ଓ ଖୋଲିଦିଅ।



୭. କାଗଜଟିକୁ ବୁଲାଇ ଦିଅ।



୮. ଏବେ ବାଁ ଓ ଡାହାଣ ଧାର ଓ ଉପର ତ୍ରିଭୁଜ ଉପରକୁ ଉଠାଅ ଯେପରି ଉପର ତ୍ରିଭୁଜର ବାଁ ଓ ଡାହାଣ କୋଣ ଦୁଇଟି ଏକାଠି ହୋଇ ବିନ୍ଦୁ ପାଖରେ ମିଶିବେ।



୯. ‒‒‒ ଗାର ଉପରେ ଭାଙ୍ଗି ସେହିପଟଟିକୁ ଭିତରକୁ ପୂରାଇ ଦିଅ। ‒‒‒ ଗାର ଉପରେ ତ୍ରିଭୁଜଟିକୁ ପଛକୁ ଭାଙ୍ଗିଦିଅ।



୧୦. ତଳ ତ୍ରିଭୁଜଟିକୁ ମଧ୍ୟ ସେହିଭଳି ଭାଙ୍ଗି ଭିତରକୁ ପୂରାଇ ଦିଅ। ଧାରଗୁଡିକ ଭଲ କରି ଚ୍ୟାପିଦିଅ।





୧୧. ଡବା ହୋଇଗଲା।

# ଦାଢିଆ ଅଜା





୧. କାଗଜଟିଏ ନେଇ ଧୂଆଁଛତା ଢଙ୍ଗାରେ ପାଦ ୭ ଯାଏଁ କର। ଆୟତକ୍ଷେତ୍ର ଦୁଇଟି ଉପର-ତଳ ହୋଇ ରହିବ।

୨. ବାକି ଦୁଇଟି ବର୍ଗକ୍ଷେତ୍ରରୁ ଆଉ ଗୋଟିଏ ଖୋଲି ଆୟତକ୍ଷେତ୍ର କରିଦିଅ।





୩. କାଗଜଟିକୁ ବୁଲାଇଦିଅ ଯେପରି ବାକି ବର୍ଗକ୍ଷେତ୍ରଟି ଉପରକୁ ରହିବ।

୪. —•—•— ଗାର ଉପରେ ଡାହାଣ କୋଣକୁ ପଛକୁ ଓଲଟାଇ ଦିଅ। ସେହିଭଳି ବାମ ପଟ କୋଣକୁ ପଛକୁ ମୋଡିଦିଅ। ଏ ଦୁଇଟି ହେବ ହାତ।



୫. ଉପର ବର୍ଗକ୍ଷେତ୍ରଟି ଅଜାର ମୁଣ୍ଡ ହୋଇଗଲା। କିଛି ତୁଳା ଲଗାଇ ବାଳ ଓ ଦାଢି କରିଦିଅ। ଆଖି, ନାକ ଆଙ୍କିଦିଅ। ଦୁଇ ହାତରେ ମଧ୍ୟ ତୁଳା ଲଗାଇ ଦେଲେ କୋଟ୍ ପରି ଦେଖାଯିବ। ଏହା ହେବ ତୁମର ଦାଢିଆ ଅଜା।

# ଚଉକି





୧. କାଗଜଟିଏ ନେଇ ଧୂଆଁଛଡା ଡଙ୍ଗାର ପାଦ ୭ ଯାଏଁ କର। ବାକି ଦୁଇଟି ଯାକ ବର୍ଗକ୍ଷେତ୍ର ଖୋଲି ଆୟତକ୍ଷେତ୍ର କରିଦିଅ।

୨. ଡାହାଣ ବାଁ ଓ ତଳ ଆୟତକ୍ଷେତ୍ର ତିନୋଟିକୁ --- ଗାରରେ ପଛକୁ ଭାଙ୍ଗିଦିଅ। ଉପରର ଆୟତକ୍ଷେତ୍ରଟିକୁ ସାମନାକୁ ଭାଙ୍ଗି ଖୋଲ ଯେପରି ତାହା ୯୦° ଉଠି ରହିବ।



୩. ଚଉକିଟି ହୋଇଗଲା। ବାଁ, ଡାହାଣ ଓ ତଳ ଆୟତକ୍ଷେତ୍ର ତିନୋଟି ଚଉକିର ଗୋଡ ଓ ଉପରର ଆୟତକ୍ଷେତ୍ରଟି ପଛପଟ ହୋଇଗଲା।

# ଧୂଆଁଛଡା ଡଙ୍ଗା







୧. ଦିନରାତି ଆଧାରରୁ ଆରମ୍ଭ କର। କାଗଜଟିକୁ ଓଲଟାଇ ଦିଅ।

୨. ସବୁଗୋଟି ଯାକ କୋଣକୁ ମଝି ବିନ୍ଦୁଯାଏଁ ଭାଙ୍ଗ।







୩. କାଗଜଟିକୁ ପୁଣି ଥରେ ଓଲଟାଇ ଦିଅ।

୪. ସବୁଗୋଟି ଯାକ କୋଣକୁ ପୁଣି ଥରେ ମଝି ବିନ୍ଦୁଯାଏ ଭାଙ୍ଗ।





୫. କାଗଜଟିକୁ ଆଉ ଥରେ ଓଲଟାଇ ଦିଅ।





୬. ଏବେ ଗୋଟିଏ ବଡ ବର୍ଗକ୍ଷେତ୍ର ଭିତରେ ଚାରୋଟି ଛୋଟ ବର୍ଗକ୍ଷେତ୍ର ରହିଛି।

୭. ଗୋଟିଏ ଛୋଟ ବର୍ଗକ୍ଷେତ୍ରକୁ ମଝି କୋଣରୁ ଉଠାଇ ଖୋଲିଦିଅ ଓ ବାହାର ଆଡକୁ ଚାପିଦିଅ। ସେଇଟି ଗୋଟିଏ ଆୟତକ୍ଷେତ୍ର ହୋଇଯିବ।





୮. ଠିକ୍ ତା'ର ଆରପଟରେ ଥିବା ବର୍ଗକ୍ଷେତ୍ରକୁ ମଧ୍ୟ ସେହିପରି ଖୋଲିଦିଅ।

୯. ବାକି ବର୍ଗକ୍ଷେତ୍ରର ଦୁଇଟି ମଝି କୋଣ ଦୁଇଟିକୁ ଧରି ବାହାର ଆଡକୁ ଟାଣ ଯେପରି ଆଗରୁ ହୋଇଥିବା ଆୟତକ୍ଷେତ୍ର ଦୁଇଟି ପାଖକୁ ପାଖ ଲାଗିଯିବେ।

୧୦. ଭଲ କରି ଚାପିଦେଲେ ଟଣା ହେଉଥିବା ବର୍ଗକ୍ଷେତ୍ର ଦୁଇଟି ତ୍ରିଭୁଜ ପାଲଟିଯିବେ। ମଝିରେ ଧୂଆଁନଳୀ ରହିଥିବା ଡଙ୍ଗାଟିଏ ଆମକୁ ମିଳିବ।



# ଯୋଡିଡଙ୍ଗା ଆଧାର



୧. କାଗଜଟିକୁ କୋଣ ବାଗରେ ––– ଗାର ଉପରେ ଅଧା କରି ଭାଙ୍ଗ। ଖୋଲି ଦେଇ ଆଉ କୋଣ ବାଗରେ ମଧ୍ୟ ଅଧା କରି ଭାଙ୍ଗ।



୨. ତଳ-ଉପର ଓ ବାଁ-ଡାହାଣ ଦିଗରେ ଅଧା କରି ଭାଙ୍ଗ ଓ ଖୋଲିଦିଅ। ଦାଗ ଗୁରୋଟି ଏହିପରି ଦେଖାଯିବ।



୩. ବାଁ ଓ ଡାହାଣ ଧାରକୁ ମଝି ଗାର ଯାଏଁ ଭାଙ୍ଗ।



୪. ଉପର ଓ ତଳ ଧାରକୁ ମଧ୍ୟ ସେହିପରି ମଝିଗାର ଯାଏଁ ଭାଙ୍ଗ...



୫. ... ଓ ଖୋଲିଦିଅ।



୬. ଏହିପରି ଦେଖାଯିବ। ––– ଗାର ଉପରେ ଡାହାଣ ପଟକୁ ଭାଙ୍ଗ।







୭. ଭାଙ୍ଗଟିକୁ ଖୋଲିଦିଅ।

୮. ଆଗଥର ଭଳି --- ଗାର ଉପରେ ବାଁ ପଟକୁ ଭାଙ୍ଗ ଓ ଖୋଲିଦିଅ।



୯. ମଝିବିନ୍ଦୁ ଉପରେ ( ) ଆଙ୍ଗୁଠିରେ କାଗଜକୁ ଚାପି ଧରି ତଳ କୋଣ ଦୁଇଟିକୁ ବାହାରକୁ ଭିଡ। ତଳ ଧାରଟି ମଝିଗାର ଯାଏଁ ଉଠି ଆସିବ।



୧୦. ସେହିପରି ଉପର କୋଣ ଦୁଇଟିକୁ ମଧ୍ୟ ଖୋଲିଦିଅ। ଭାଙ୍ଗଗୁଡିକୁ ଚାପିଦିଅ।



୧୧. ଏହା ହେଉଛି ଆମର ଯୋଡିଡଙ୍ଗା ଆଧାର।



୧୨. ଏହି ଆଧାରକୁ ମଝିରେ ପଛପଟକୁ ଭାଙ୍ଗିଦେଲେ ଯୋଡିଡଙ୍ଗା ହୋଇଗଲା।

# ଫୁଲ



୧. ଯୋଡ଼ିଡଙ୍ଗା ଆଧାରଟିଏ ତିଆରି କର।



୨. ଉପରର ବାଁପଟ ଭାଗକୁ ଉପରକୁ ଓ ତଳର ଡାହାଣପଟ ଭାଗକୁ ତଳକୁ ଖୋଲିଦିଅ। ଚକ୍ରି ହୋଇଗଲା।



୩. ଚକ୍ରିର ଡାହାଣପଟ ତଳ ତ୍ରିଭୁଜଟିକୁ ୯୦° ଉପରକୁ ଉଠାଅ।



୪. ମଝିରେ ଆଙ୍ଗୁଠି ରଖି ଖୋଲିଦିଅ...



୫. ...ଓ ତଳକୁ ଚାପିଦିଅ। ବାହାର କୋଣ ବିନ୍ଦୁଟି ମଝିକୁ ଚାଲିଆସିବ।



୬. ସେହିପରି ଅନ୍ୟ ତିନୋଟି ତ୍ରିଭୁଜ ମଧ୍ୟ ଖୋଲିଦେଇ ଚାପିଦିଅ।



୭. ପ୍ରତି ବର୍ଗକ୍ଷେତ୍ରର ଧାର ଦୁଇଟିକୁ --- ଗାର ଉପରେ ମଝିଯାଏଁ ଭାଙ୍ଗ।



୮.ଡାହାଣପଟ ତଳ ବର୍ଗକ୍ଷେତ୍ରର ବାମ ପଟ ତ୍ରିଭୁଜକୁ (କ) ଉପରକୁ ଟେକି ଧରି ଛିଡା କରାଅ।



୯. ସେହି ବର୍ଗକ୍ଷେତ୍ରର ଡାହାଣପଟ ତ୍ରିଭୁଜ (ଖ)କୁ ସେହିଭଳି ଟେକି ଚାପିଦିଅ।



୧୦. ... ଓ ଚାପିଦିଅ।



୧୧. ଏହିପରି ପ୍ରତି ବର୍ଗକ୍ଷେତ୍ରର ଦୁଇଟି ଯାକ ତ୍ରିଭୁଜକୁ (ମୋଟରେ ୮ଟି) ଖୋଲି ଚାପିଦିଅ।



୧୨. -·-·- ଗାର ଉପରେ କୋଣ ଚାରୋଟିକୁ ପଛକୁ ଭଙ୍ଗିଦିଅ।



୧୩. ଗୋଟିଏ ଛୋଟିଆ ଗୋଲ କାଗଜ କାଟି ବା ବିନ୍ଦିଟିଏ ନେଇ ମଝିରେ ଲଗାଇ ଦେଲେ ଫୁଲଟିଏ ମିଳିବ।

# ମାଛ



୧. କାଗଜଟିକୁ - - - ଗାର ଉପରେ ବାଁ-ଡାହାଣ, ଉପର- ତଳ, କୋଣରୁ କୋଣ ଯାଏଁ ଭାଙ୍ଗି ଖୋଲିଦିଅ।



୨. ଉପରର ବାଁ କୋଣଟିକୁ ମଝିବିନ୍ଦୁ ଯାଏଁ ଭାଙ୍ଗି ଦିଅ। ଓ କାଗଜଟିକୁ ଓଲଟାଇ ଦିଅ। ଏବେ ଗୋଟିଏ କୋଣ ପଛକୁ ଭାଙ୍ଗ ହୋଇ ରହିବ।



୩. ଏଥର ଏହି କାଗଜଟିରୁ ଯୋଡି ଡଙ୍ଗା ଆଧାର ତିଆରି କର। ପ୍ରଥମେ ବାଁ ଓ ଡାହାଣ ଧାରକୁ ମଝିଗାର ଯାଏଁ ଭାଙ୍ଗ।



୪. ଉପର ଓ ତଳ ଧାର ମଧ୍ୟ ମଝିଗାର ଯାଏଁ ଭାଙ୍ଗ।



୫ ....ଓ ଖୋଲିଦିଅ । --- ଗାର ଉପରେ ଥରେ ବାଁକୁ ଓ ଥରେ ଡାହାଣକୁ ଭାଙ୍ଗି ଖୋଲିଦିଅ ।



୬. ଯୋଡ଼ିଡଙ୍ଗା ଆଧାରର ପାଦ ୬, ୭, ୮ ପରି ତଳ କୋଣ ଓ ଉପର କୋଣ ମଝି ଗାର ଆଡକୁ ଖୋଲିଦିଅ । ଗୋଟିଏ କୋଣ ନଥିବା ଯୋଡ଼ିଡଙ୍ଗା ଆଧାର ମିଳିବ ।



୭. ତଳର ବାଁ ଓ ଡାହାଣ ତ୍ରିଭୁଜ ଦୁଇଟିକୁ ଉଠାଇ ତଳକୁ ଓଲଟାଇ ଦିଅ ।



୮. ତଳର ଡାହାଣ ପଟ କୋଣଟି --- ଗାର ଉପରେ ଭାଙ୍ଗ ।



୯. ପୂରା କାଗଜଟିକୁ ଓଲଟାଇ ଦିଅ ।



୧୦. ମାଛଟି ହୋଇଗଲା ।

# ଟେବୁଲ







୧. କାଗଜଖଣ୍ଡେ ନେଇ ଫୁଲ ତିଆରିର ପାଦ ୬ ପର୍ଯ୍ୟନ୍ତ ଭାଙ୍ଗ (ପୃ ୫୮)। ଫୁଲର ପାଦ ୬ରୁ ଆରମ୍ଭ କର। ଡାହାଣ ପଟତଳ ବର୍ଗକ୍ଷେତ୍ରରେ --- ଗାର ଉପରେ ମଝିକୁ ଭାଙ୍ଗ।

୨. ଡାହାଣ ପାଖ ତଳ କୋଣଟି --- ଗାର ଉପରେ ଉପରକୁ ଭାଙ୍ଗ। ଭାଙ୍ଗଗୁଡ଼ିକୁ ଭଲ କରି ଚିପିଦିଅ ଯେପରି ଦାଗ ରହିଯିବ ଓ ତାପରେ ଖୋଲିଦିଅ।





୩. ତଳ ଡାହାଣ ବର୍ଗକ୍ଷେତ୍ରର ଉପର ପରସ୍ତ କାଗଜଟି କୋଣରୁ ଧରି ତଳକୁ ଟାଣିଦିଅ ଯେପରି ମଝିରେ ଥିବା ଧାର ଦୁଇଟି କର୍ଣ୍ଣ ଯାଏଁ ଆସି ମିଶିଯିବ। ଭାଙ୍ଗଗୁଡ଼ିକୁ ଭଲ କରି ଚିପି ଦିଅ ଏବେ ଏହା ଗୋଟିଏ ରମ୍ବସ୍ ଭଳି ଦେଖାଯାଉଥିବ।

୪. ଏବେ ଅନ୍ୟ ତିନୋଟି ବର୍ଗକ୍ଷେତ୍ରକୁ ସେହିଭଳି ଭାଙ୍ଗି ଖୋଲିଦିଅ। ଯେପରି ଚାରିକୋଣରେ ଚାରୋଟି ରମ୍ବସ୍ ରହିବ।





୫. ବର୍ଗକ୍ଷେତ୍ରର ବାହାରକୁ ରହିଥିବା କୋଣଗୁଡ଼ିକୁ --- ଗାର ଉପରେ ପ୍ରତି ରମ୍ପସ୍ର ମଝି ଯାଏଁ ଭାଙ୍ଗ।

୬ ଗ୍ରୋଟି ଯାକ କୋଣକୁ ଗାର ଉପରେ ଭାଙ୍ଗି ଭଲକରି ଘ୍ରପିଦିଅ ଓ ଖୋଲିଦିଅ ଯେପରି ସେଗୁଡ଼ିକ ୯୦° ଠିଆ ହୋଇ ରହିବ।



୭. କାଗଜଟିକୁ ପୁରା ଓଲଟାଇ ଦିଅ।



୮. ଟେବୁଲଟି ଠିଆ ହୋଇ ରହିବ।

# ପକ୍ଷୀ ଆଧାର





୧. ଠିକିରି ଆଧାରରୁ ଆରମ୍ଭ କର। କାଗଜର ଖୋଲା ପଟଟି ତଳକୁ ରଖ। ଉପର ପରସ୍ତର ବାଁ ଓ ଡାହାଣ କୋଣ ଦୁଇଟିକୁ – – – ଗାର ଉପରେ ମଝି ଯାଏଁ ଭାଙ୍ଗ।

୨. ଉପର କୋଣଟିକୁ – – – – ଗାର ଉପରେ ତଳକୁ ଭାଙ୍ଗ।





୪. ଏହିପରି ତିନୋଟି ଦାଗ ଦେଖାଯିବ।

୩. ଭାଙ୍ଗ ତିନୋଟିକୁ ଖୋଲିଦିଅ।

୫. ଉପର ପରସ୍ତଟିକୁ ଉପରକୁ ଉଠାଅ...







୬. ଉପର ଭାଙ୍ଗଠାରେ ଓଲଟାଇ ଦିଅ।

୭. ବାଁ ଓ ଡାହାଣ କୋଣ ଦୁଇଟି ଗୁପିଦିଅ ଯେପରି ଧାର ଦୁଇଟି ମିଶିଯିବ।







୮. ଭାଙ୍ଗଗୁଡିକୁ ଭଲ କରି ଗୁପିଦିଅ ଓ ଓଲଟାଇ ଦିଅ।

୯. ଆରପଟ ଭଳି ଏ ପଟରେ ମଧ୍ୟ ଭାଙ୍ଗି ଖୋଲିଦିଅ।



୧୦. ପକ୍ଷୀ ଆଧାର ହୋଇଗଲା।

# ଉଡନ୍ତା ବଗ



୧. ପକ୍ଷୀ ଆଧାରରୁ ଆରମ୍ଭ କର। ଖୋଲା ପଟଟି ତଳକୁ ରଖ। ଉପର ପରସ୍ତର ବାଁ କୋଣଟି ଡାହାଣ ପଟକୁ ଶୁଆଇଦିଅ।



୨. କାଗଜଟିକୁ ଓଲଟାଇ ଦିଅ।



୩. ବାଁ କୋଣଟିକୁ ଉଠାଇ ଡାହାଣ କୋଣ ଉପରେ ଶୁଆଇଦିଅ।



୪. - - - ଗାର ଉପରେ ଉପର ପରସ୍ତଟି ଉପରକୁ ଓ ତଳ ପରସ୍ତଟି ପଛପଟେ ଉପରକୁ ଭାଙ୍ଗ।



୫. ମଝି ପରସ୍ପର ବାଁ ଓ ଡାହାଣ କୋଣ ଦୁଇଟିକୁ ଦୁଇ ପଟକୁ ଅଳ୍ପ ବାହାର କରି ଗୁପିଦିଅ।



୬. --- ଗାର ଉପରେ ଭଲ କରି ଭାଙ୍ଗି ଗୁପିଦିଅ, ତଳକୁ ଦାବି ଦେଇ ଥଣ୍ଟ କର।



୭. ଡେଣା ଦୁଇଟିରେ ପେନସିଲ୍ ଗୁଡାଇ ମୋଡିଦିଅ।



୮. ପକ୍ଷୀଟି ହୋଇଗଲା, ତା'ର ଛାତି ପାଖରୁ ଗୋଟିଏ ହାତରେ ଧର। ଲାଞ୍ଜଟିକୁ ଧରି ଆଗକୁ ପଛକୁ ଟାଣିଲେ ପକ୍ଷୀଟି ଡେଣା ହଲାଇ ଉଡିଲା ଭଳି ମନେହେବ।

# ବଡ ତାରା



୧. ପକ୍ଷୀ ଆଧାରରୁ ଆରମ୍ଭ କର। ଖୋଲା ପଟଟି ଉପରକୁ ରଖ। --- ଗାର ଉପରେ ଉପର ପରସ୍ତର ତଳ କୋଣଟି ଉପରକୁ ଉଠାଅ।



୨. କାଗଜଟିକୁ ଓଲଟାଇ ଦିଅ।



୩. --- ଗାରରେ ଉପର ପରସ୍ତର ଉପର କୋଣ ଦୁଇଟିକୁ ଭାଙ୍ଗିଦିଅ ଯେପରି ଭିତର ଧାର ଦୁଇଟି ମଝି ଦାଗରେ ମିଶିଯିବ। ଭାଙ୍ଗ ଦୁଇଟିକୁ ଭଲ କରି ଚିପିଦିଅ ଯେପରି ଦାଗ ରହିଯିବ।



୪. ବାଁ ପଟ ତ୍ରିଭୁଜକୁ ଉଠାଇ ମଝି ଦାଗ ଉପରେ ଠିଆ କରାଇଦିଅ।



୫. ଦୁଇ ପରସ୍ତ ଭିତରେ ଫାଙ୍କ କରି ବାହାର ଆଡକୁ ଚିପିଦିଅ।



୬. ସେହିଭଳି ଡାହାଣ ପଟଟି ମଧ୍ୟ ଖୋଲି ଓ ଚିପି ସମାନ କରିଦିଅ। ତାରାଟି ହୋଇଗଲା।



୭. ତିନୋଟି ତାରା କରି ଉପରକୁ ଉପର କରି ରଖି ଅଠାରେ ଯୋଡିଦେଲେ ବଡ ତାରାଟି ହୋଇଯିବ।

# ମାଛ ଆଧାର



୧. କାଗଜଟିକୁ ମଝିରୁ ଭାଙ୍ଗି ଖୋଲିଦିଅ।



୨. --- ଗାରରେ ବାଁ ଓ ଡାହାଣ ଧାରକୁ ମଝି ଦାଗ ଯାଏଁ ଭାଙ୍ଗିଦିଅ।





୩. କାଗଜଟିକୁ ଓଲଟାଇ ଦିଅ।



୪. --- ଗାର ଉପରେ ମଝିରୁ ଭାଙ୍ଗିଦିଅ ଯେପରି ଉପର କୋଣଟି ତଳ କୋଣ ସହ ମିଶିଯିବ।







୫. ପୁଣି ଓଲଟାଇ ଦିଅ।

୬. ଡାହାଣ ପଟର ଉପର ପରସ୍ତ କାଗଜଟିକୁ ତଳ କୋଣରୁ ଧରି ଉପରକୁ ଉଠାଇ ଦିଅ ଓ ଭଲ କରି ଚାପିଦିଅ ଯେପରି ତାହା ଗୋଟିଏ ତ୍ରିଭୁଜ ହୋଇଯିବ।



୭. ବାଁ ପଟଟି ମଧ୍ୟ ସେହିପରି ଖୋଲି ଚାପିଦିଅ।



୮. ମାଛ ଆଧାରଟି ହୋଇଗଲା।

# ମାଛ



୧. ମାଛ ଆଧାରଟିଏ
ତିଆରି କର।





୨. ଗୋଜିଆ ପଟର ପରସ୍ତ
ଦୁଇଟିକୁ ଅଲଗା କର,
ଯେପରି କୋଣ ଦୁଇଟି
ଓଲଟା ଦିଗରେ ରହିବ।



୩. ମଝିର –.–.– ଗାରରେ ପଛକୁ
ମୋଡ।





୪. --- ଗାରରେ ତଳ ଆଡକୁ ଭାଙ୍ଗ । ପଛପଟକେ ମଧ୍ୟ ସେହିପରି ଭାଙ୍ଗି ମାଛର ଗାଲିସି କର ।

୫. -.-.- ଗାରରେ ପଛକୁ ଭାଙ୍ଗ ।



୬. ଦୁଇ ପରସ୍ତ ଭିତରକୁ ପୂରାଇ (ଅଣ୍ଟ ଭଳି) ଲାଞ୍ଜ ତିଆରି କର ।



୭. ମାଛଟିଏ ମିଳିଯିବ ।

# ତିମି





୧. ମାଛ ଆଧାରରୁ ଆରମ୍ଭ କର।

୨. ମାଛ ତିଆରି ଭଳି ଗୋଜିଆ ପଟର ପରସ୍ତ ଦୁଇଟିକୁ ଅଲଗା କର, ଯେପରି କୋଣ ଦୁଇଟି ଓଲଟା ଦିଗରେ ରହିବ।





୩. କାଗଜଟିକୁ ଓଲଟାଇ ଦିଅ ଓ ବୁଲାଇ ଦିଅ।

୪. --- ଗାରରେ କୋଣ ତିନୋଟିକୁ ଭାଙ୍ଗିଦିଅ।



୫. --- ଗାରରେ ମଝିରୁ ଭାଙ୍ଗିଦିଅ।





୬. ବାଁ ପଟର ତ୍ରିଭୁଜକୁ --- ଗାରରେ ତଳକୁ ଭାଙ୍ଗିଦିଅ।

୭. ପଛପଟର ତ୍ରିଭୁଜକୁ ମଧ୍ୟ ସେହିଭଳି ଭାଙ୍ଗ। ଡାହାଣ ପଟ କୋଣଟି --- ଗାର ଉପରେ ପଛକୁ ଭାଙ୍ଗିଦିଅ।







୮. ଉପରକୁ ଉଠି ରହିଥିବା ତ୍ରିଭୁଜର ଧାରକୁ କିଛି ତଳକୁ କାଟିଦିଅ।

୯. ଉଫର ପରସ୍ତ କାଗଜକୁ --- ଗାରରେ ଭାଙଅଗିଦିଅ। ଦୁଇ ଫାଳିଆ ଲାଞ୍ଜଥିବା ତିମିଟିଏ ମିଳିବ।

୧୦. ତିମିଟି ଉପରୁ ଓ ତଳୁ ଏହିପରି ଦେଖାଯିବ ।

ଉପର



ତଳ



# ବେଙ୍ଗ ଆଧାର



୧. ଖଣ୍ଡେ କାଗଜ ନେଇ ଠିକିରି ଆଧାର ତିଆରି କର। କାଗଜର ଖୋଲା ମୁହଁ ତଳକୁ ରଖ। ଉପର ପରସ୍ତର ବାଁ ତ୍ରିଭୁଜକୁ --- ଗାରରେ ମଝି ଯାଏଁ ଭାଙ୍ଗି ଭଲ କରି ଘ୍ରିପିଦିଅ।



୨. ଭାଙ୍ଗଟିକୁ ଖୋଲିଦିଅ ଓ ତ୍ରିଭୁଜଟିକୁ ଟେକି ଦୁଇ ପରସ୍ତ କାଗଜ ଫାଙ୍କ କର।



୩. ଉପର କୋଣଟିକୁ --- ଗାରରେ ତଳକୁ ଭାଙ୍ଗି ଭଲ କରି ଘ୍ରିପିଦିଅ ଯେପରି ଦାଗ ରହିଯିବ। ତା'ପରେ ଭାଙ୍ଗଟିକୁ ଖୋଲିଦିଅ।



୪. ଉପର ପରସ୍ତର ବାଁ ଓ ଡାହାଣ ତ୍ରିଭୁଜ ଦୁଇଟିକୁ --- ଗାରରେ ମଝି ଯାଏଁ ଭାଙ୍ଗ, ଚିପିଦିଅ ଓ ପୁଣି ଥରେ ଖୋଲିଦିଅ ।



୫. ଲିଲି ଫୁଲର ପାଦ ୭ (ପୃ ୩୮) ଭଳି ଉପର ପରସ୍ତଟିକୁ ଖୋଲିଦିଅ ।



୬. ଅନ୍ୟ ତିନୋଟି ପାଖ ମଧ୍ୟ ସେହିଭଳି ଭାଙ୍ଗି ଖୋଲିଦିଅ ।



୭. ବେଙ୍ଗ ଆଧାର ହୋଇଗଲା ।

# ବେଙ୍ଗ







୧. ବେଙ୍ଗ ଆଧାରରୁ ଆରମ୍ଭ କର। --- ଗାର ଉପରେ ଉପର ପରସ୍ପର ତଳ କୋଣ ଦୁଇଟି ବାହାରକୁ ଭାଙ୍ଗିଦିଅ।

୨. ପୁଣି ଥରେ ଖୋଲିଦିଅ। ଭାଙ୍ଗ ଦୁଇଟିକୁ ପକ୍ଷୀର ଅଣ୍ଟ (ପୃ ) କରିବା ଭଳି ଉପର ମୁହାଁ କରି ଭିତରକୁ ଭାଙ୍ଗିଦିଅ।





୩. ଏ ଦୁଇଟି ବେଙ୍ଗର ଆଗ ଗୋଡ ହୋଇଗଲା।

୪. ପଛଗୋଡ ପାଇଁ --- ଗାରରେ ପ୍ରତି ଗୋଡରେ ତିନୋଟି କରି ଭାଙ୍ଗ କର।



୫. ପ୍ରତି ଭାଙ୍ଗରେ ଅଣ୍ଟ କଲା ଭଳି
ଗୋଡ଼କୁ ଭିତରକୁ ପୂରାଇଦିଅ ।





୬. ଦେହ ପାଖର ଭାଙ୍ଗରେ ଗୋଡଟି ଉପରକୁ ବାହାରିବ । ମଝିରେ ତଳକୁ ଓ ଶେଷ ଭାଙ୍ଗରେ ପୁଣି ଉପରକୁ ରହିବ ।

୭. ସେହିଭଳି ଆଗ ଗୋଡ ଦୁଇଟିକୁ ତିନି ଭାଙ୍ଗ କର । ପ୍ରତି ଭାଙ୍ଗରେ ଗୋଡ଼କୁ ଅଣ୍ଟ ଭଳି ଭିତରକୁ ପୂରାଅ ।



୮. ପଛ ଦୁଇଗୋଡର ମଝିରେ ଥିବା ଛୋଟ କଣାରେ ଫୁଙ୍କି ଦିଅ ଓ ସାମନାର ଗୋଜିଆ ନାକକୁ ଚିପି ଅଳ୍ପ ଚେପଟା କରିଦିଅ।



୯. ବେଙ୍ଗର ଆଖି ଦୁଇଟି ଆଙ୍କି ଦିଅ ବା କଳା କାଗଜ କାଟି ଲଗାଇ ଦିଅ। ବେଙ୍ଗଟି ହୋଇଗଲା।



ବେଙ୍ଗ ଆଧାର ଓ ବେଙ୍ଗ ଆକୃତି ଦୁଇଟି ଯାକ କରିବା କଷ୍ଟକର। ସେଥିପାଇଁ ଆମେ ସେ ଦୁଇଟିକୁ ଶେଷରେ ଦେଇଛୁ। ଆଉ କେତେକ ଜଟିଳ ଆକୃତି ସବୁ ମଧ୍ୟ ବେଙ୍ଗ ଆଧାରରୁ କରିହେବ। ଏହାଛଡା ଆହୁରି କିଛି ଆଧାର ରହିଛି ଯାହା ବେଶ୍ କଷ୍ଟ। ତେବେ ଧୈର୍ଯ୍ୟର ସହିତ ନିୟମିତ ଅଭ୍ୟାସ କଲେ ସେସବୁ ଜଟିଳ ଆକୃତି ସବୁ ମଧ୍ୟ କରିହେବ।

# ସହାୟକ ଗ୍ରନ୍ଥସୂଚୀ

ଇଂରାଜୀ ଭାଷାରେ ଓରିଗାମୀରେ ଅନେକ ବହି ରହିଛି। ସେଥିରେ ସହଜ ଆକୃତିରୁ ଆରମ୍ଭ କରି ଜଟିଳ ଆକୃତି ସବୁ ବେଶ୍ ସରଳ ଭାଷାରେ ଲେଖାଯାଇଛି। ସେଭଳି କିଛି ବହିର ତାଲିକା ଏଠାରେ ଦେଉଛୁ। ଆଶା କରୁଛୁ ଏଗୁଡ଼ିକ ସାଥିମାନଙ୍କୁ ଆହୁରି ଆଗେଇ ଯିବାରେ ସାହାଯ୍ୟ କରିବ।


୧. କାଗଜଭଙ୍ଗାର ମଜା, ସୃଜନିକା

1. *Origami*, N.E. Publishers,
16, Motilal Mullick Lane, Calcutta 700035

2. *My book of paper folding*, S. Narvekar
Navneet Publications (India) Ltd.
Bhabani Shankar Road, Dadar, Mumbai 400028

3. *Origami and Paper Play*,
Madhuban Educational books,
576, Masjid Road, Jangpura, New Delhi 110014

4. *Origami - A Complete Step-by-step Guide*, Paul Jackson
Hamlyn Publishing Group, London

5. *Origami - Techniques, Methods, Materials*,
Chancellar Press, London

6. *Origami - Japanese Paper Folding*, Satoru Tanase
Asahi Shiko Co. Ltd., Nagoya

7. *Origami*, Hideaki Sakata
Graph-Sha Ltd., Tokyo

8. *Teach yourself Origami*, Robert Harbin,
Hodder & Stoughton, London

9. *The Joy of Origami*, Toshie Takahama
Shufunotomo, Tokyo

# ସୃଜନିକାର ଅନ୍ୟ କିଛି ପ୍ରକାଶନ:

| | | |
|---|---|---|
| ୧. | ଆକାରର ଦୁନିଆ | ଟ ୬.୦୦ |
| ୨. | ବିଶ୍ୱର ରୂପ | ଟ ୨.୦୦ |
| ୩. | ଆସ ତାରା ଦେଖିବା | ଟ୨୫.୦୦ |
| ୪. | ଆମ ମନର ଗୀତ | ଟ ୮.୦୦ |
| ୫. | ଛାଇ ଆଲୁଅର ଖେଳ | ଟ ୨.୦୦ |
| ୬. | ଚନ୍ଦ୍ର ଅଭିଯାନ | ଟ ୫.୦୦ |
| ୭. | କାହିଁକି ଭାଇ କାହିଁକି | ଟ୨୫.୦୦ |
| ୮. | ପ୍ରାଥମିକ ଶିକ୍ଷାପଦ୍ଧତି | ଟ୧୫.୦୦ |
| ୯. | ଗଛବଇଦ | ଟ୧୫.୦୦ |
| ୧୦. | କାଗଜଭଙ୍ଗାର ମଜା | ଟ୧୫.୦୦ |
| ୧୧. | ବିଜ୍ଞାନ ପହଲି | ଟ ୮.୦୦ |

ଏହାଛଡା ଶିକ୍ଷା ଓ ବିଜ୍ଞାନ ଉପରେ ଅନ୍ୟମାନଙ୍କ ଦ୍ୱାରା ପ୍ରକାଶିତ କିଛି ବହି ଓ ବିଜ୍ଞାନ ଖେଳନାର ବିତରଣ ମଧ୍ୟ ସୃଜନିକା କରିଥାଏ। ଡାକ ଯୋଗେ କେବଳ ବହି ପଠାଯାଇ ପାରିବ। ପୂରା ମୂଲ୍ୟ ସହିତ ଡାକ ଖର୍ଚ୍ଚ ଟ୧୦.୦୦ ଆଗୁଆ ପଠାଇଲେ ବହିଗୁଡିକ ରେଜିଷ୍ଟ୍ରି ଡାକରେ ପଠାଯାଏ।